# ଆମ ସମସ୍ୟା



ଶତ୍ରୁଘ୍ନ ନାଥ

# ଆମ ସମସ୍ୟା

## ପ୍ରଥମ ଭାଗ

ଶ୍ରୀ ଶତ୍ରୁଘ୍ନ ନାଥ, ଏମ୍. ଏ. (ଲଣ୍ଡନ)



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଆମ ସମୟ

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍**

କଟକ-୭୫୩୦୦୨

ନୂତନ ସଂସ୍କରଣ—୧୯୮୬

ମୁଦ୍ରାକର
ନବରତ୍ନ ପ୍ରିଣ୍ଟର୍ସ
କଟକ—୯

ମୂଲ୍ୟ—ଟ ୩-୦୦ ଟଙ୍କା ମାତ୍ର

# Ama Samaya

Sri Satrughna Nath, M. A. (London)

Publisher

**Srimati Annapurna Misra**

**Cuttack Students' Store**

Cuttack—753002

First Edition—1986

Price : Rs. 3-00

—ଏକ—

## ମହୀ କ୍ଷଣ କ୍ଷଣକେ ଆନ

ଏବେ ଆମେ ଯାହା ଆଖିରେ ଦେଖୁଛୁଁ, କାନରେ ଶୁଣୁଛୁଁ ଓ ପ୍ରମାଣ କରି ବୁଝୁଛୁଁ, ସେ କଥା ଆମ ଗାଁ ମାଇପଙ୍କ ତୁଣ୍ଡରେ ଥିଲି, "ମହୀ କ୍ଷଣ କ୍ଷଣକେ ଆନ"।

ମାଣ ସାରୁର ଛତା ପରି ବଡ଼ ପତ୍ର। ମେଘ ଟପର ଟପର ବରଷିଲା। କେଶୁର ଗଜା ମାଇଲା। ସାରୁମୂଳରେ ବୁଢ଼ାବେଙ୍ଗ ରଜା ପରି ବସିଲା। ପାଖରେ ଛୋଟ ବଡ଼ ଆଉ ସବୁ ବେଙ୍ଗ। ବୁଢ଼ାବେଙ୍ଗ କହିଲା, "ଇଏ ଖରା ଥିଲା, ପୁଣି ମେଘ ବରଷିଲା। ମହୀ କ୍ଷଣ କ୍ଷଣକେ ଆନ ହେଲା।"

କିଛି ସ୍ଥିର ହୋଇ ରହୁନାହିଁ। ସବୁ ବଦଳି ଯାଉଛି। ନୂଆ ନୂଆ କଥା ଘଟୁଛି। ଆଜି ଯାହା ଅଛି, ସେ କାଲିକି ନାହିଁ। ଏବେ ଯାହା ଅଛି, ସେ ଆଗବେଳକୁ ବଦଳି ଯାଉଛି। ନୂଆ କଥା ହେଉଛି।

ଆମ ଗାଁକୁ ରାସ୍ତା ନଥିଲା। ବର୍ଷା ଦିନରେ ପେଟେ ପାଣି, ଏ ମୁଣ୍ଡରୁ ସେ ମୁଣ୍ଡ ଗାଁ ଗୋହିରୀ ପାଣି ପୂରିଥିଲା। କାଦୁଅରେ ଦଳି ଫିଟୁଥିଲା ଆମ ଗାଁ ଦାଣ୍ଡ। ଯମ ମଧ୍ୟ ପଶିବାକୁ ଭୟ କରୁଥିଲା। ସେ କଥା ଆଉ ନାହିଁ। ରାଜ ଦାଣ୍ଡ ପଡ଼ିଛି, ଖରା ବରଷାର ଭୟ ନାହିଁ। ଗୋଡ଼ରେ ପାଣି ଲାଗୁନାହିଁ। ଏଇ କେତୁଟା ଦିନରେ ସୁନ୍ଦର ରାସ୍ତା ହେଲା।

ବଜାରରୁ କୋଡ଼ିଏ କିଲୋମିଟର, ରେଲ ଷ୍ଟେସନରୁ ପଚାଶ କିଲୋମିଟର ଚାଲି ଚାଲି ସାହା ଉଡ଼ି ଯାଉଥିଲା । ଛତା ଯୋତା



ଛିଡ଼ୁଥିଲା । ରାତ ଅଧକରୁ ପୁଣି ସଞ୍ଜ ହେଉଥିଲା, ତେବେ ମଧ୍ୟ ରାସ୍ତା ସରୁ ନଥିଲା । ଥରେ ଗଲେ ବା ଆସିଲେ ପଥଶ୍ରମ ମେଣ୍ଟିବାକୁ ଦୁ'ଦିନ ଲାଗୁଥିଲା । ସେକଥା ଆଉ ନାହିଁ । ବସ୍, ମୋଟର ଗାଡ଼ି, ଟ୍ରକ୍ ରାସ୍ତା ଫିଟାଇ ଦେଇଛି । ଅନ୍ଧି କନ୍ଧିକୁ ଯାଇ ହେବ । ଦିନକର ରାସ୍ତା ଏବେ ଘଣ୍ଟାକର । ସବୁ ବଦଳି ଯାଇଛି ।

—କାହିଁ କେଉଁ ମୂଲକରୁ ଇଂରେଜମାନେ ଆସିଥିଲେ । କେତେକାଳ ଏଠି ପୁଅ, ନାତି, ଅଣନାତି, ପଣନାତି ଧରି ଆମ ଦେଶରେ ରାଜୁତି କଲେ । ସେ ରାଜୁତି ଶେଷ ହେଲା । ଦେଶ ଓଲଟି ଗଲା । ହାକିମ ଗଲେ, ତାଙ୍କ ପଛେ ପଛେ ହୁକୁମ ଉଭେଇଗଲା ।



ଏମାନେ ଏତେ ଶୀଘ୍ର ଯିବେ, ଏକଥା କାହା ମନରେ ଥିଲା କି ? ଆଉ କେତୋଟା ଦିନ ପରେ ଏ ସବୁ ଇତିହାସର କଥା ହେବ । ଯୁଗ ବଦଳିଗଲା । ଦେଶ ବଦଳିଲା । ରାମରାଜ୍ୟ ତ ରହିଲାନାହିଁ । ମୋଗଲ ରାଜୁତି ଚାଲିଗଲା । ପ୍ରତାପୀ ରାଜା ଗଲେ, ଡରୁଆ ରାଜା ମଧ୍ୟ ଗଲେ । ମହୀ ବଦଳିଗଲା, ସବୁ ଇତିହାସରେ ରହିଲା ।

ଗଡ଼ଜାତର ଅନ୍ଧାରି ଶାସନ କୁଆଡ଼େ ଗଲା ? ଯୁଗ ବଦଳିଲା । କାଳର ଗତିରେ ସବୁ ଉଭେଇ ଗଲା । ଜମିଦାର ଓ

ଜମିଦାରୀ ଏତ ତୋଡ଼୍ଫାଡ଼ା ଦିନରେ ଉଠିଗଲା । ବେଠି, ବେଗାର ଆଉ ନାହିଁ । ଧର, ମାର ଓ ନମସ୍କାର ଆଉ କାହିଁ ? ଦୁନିଆ ବଦଳୁଛି । ଆମେ ବୁଝିବା ଓ ଅନ୍ୟକୁ ବୁଝେଇବା । ଆମ ଦେଶର ଶାସନ ଆମ ହାତରେ ।

ଶଗଡ଼ ଚକ ପରି ଘୂରି ଚାଲିଛି । ଆଜି ନୁହେଁ ବହୁ ବର୍ଷରୁ; ଯେଉଁ ଦିନରୁ ମନୁଷ୍ୟ ହେଲେଣି, ସେ ଦିନରୁ ବଦଳୁଛି । ବଦଳି ବଦଳି ଚାଲିଛି । କେତେ ବଦଳା ବଦଳି ହେଲାଣି ଓ କେତେ ହେବ ! ଶେଷରେ କଅଣ ହେବ କିଏ କହିବ !

ଆମେ ପଛକୁ ଅନାଇବା । ନଈର ସୁଅକୁ ଚାହିଁବା । କାଳର ଗତିକୁ ଲକ୍ଷ୍ୟ କରିବା । ଦେଖିବା ସେଇ ଗୋଟିଏ କଥା, ବଦଳୁଛି ଓ ତେଣିକି ବଦଳିବ ।

ରାବଣ ସିନା ପୁଷ୍ପକ ରଥରେ ସୀତାଙ୍କୁ ଚୋରାଇ ନେଲେ – ଆମକୁ ଅସମ୍ଭବ ଲାଗୁଥିଲା । ବାଲ୍ମୀକିଙ୍କ କଥା ଚାତୁରୀ ପରି ମନେ ହେଉଥିଲା । ଆଜିକାଲି ପୁଷ୍ପକ ବିମାନ ନୁହେଁ, ବ୍ୟୋମଯାନ ଉଡ଼ି ଚାଲିଛି । କେତେ ସୀତା, କେତେ ରାମ, କେତେ ବି ରାବଣ ସେଥିରେ ଉଡ଼ୁଛନ୍ତି । ଏ ସବୁ ବିଜ୍ଞାନର କାମ । ଆଉ ସେ ମାୟାମୃଗ ନାହିଁ । ଲକ୍ଷ୍ମଣର ଶକ୍ତିଭେଦ ନାହିଁ । ଜଟାୟୁ ଆଉ ରଥ ଭାଙ୍ଗୁ ନାହିଁ । ଯୁଦ୍ଧର ଗତି ବଦଳି ଯାଉଛି । ଆଉ ହାତାହାତି ନାହିଁ । ଏବେ ବୋମାର କାମ । ଗୋଟିଏ ଅସ୍ତ୍ରରେ ଦେଶ ଛାରଖାର । ଏଥିରେ ବି ପରିବର୍ତ୍ତନ । ଯୁଗ ଆଗେଇ ଚାଲିଛି । ଆମ ଚିନ୍ତା ମାଡ଼ି ଚାଲିଛି ।

ଆଙ୍ଗିମା ଅମଳର ବଇଠା ଆଉ ନାହିଁ । ପୁରାଣ ପଣ୍ଡାଙ୍କର ଜଡ଼ାତେଲ ଦୀପର ସଂଖ୍ୟା କମିଯାଇଛି । କିରାସିନୀ ଡିବିରି ବା

ବୁଙ୍ଗୀର କଳା ଆଉ କାନ୍ଥରେ ପଡ଼ୁନାହିଁ ବା ନାକରେ ପଶୁନାହିଁ । ଗାଁ ଗହଳରେ ବି ଘରେ ଘରେ ଟିପାବତୀ ହେଲାଣି । ଭଣ୍ଡ ଖଣ୍ଡିଙ୍କ ଘରେ ତ ଲଣ୍ଠନ ଅଛି । ଧନୀ ଘରମାନଙ୍କରେ ପେଟ୍ରୋମାକ୍ସର ଦୁହୁଡ଼ି ଜଳୁଛି । ଏହା ସାଙ୍ଗକୁ ବିଜୁଳିଆଲୁଅର ସୁଅ ସହର ବଜାର ଓ ଆଖପାଖ ଗାଁଗଣ୍ଡାରେ ବହି ଚାଲିଛି । ଆଉ ବାହା ନିମିତ୍ତରେ ମସାଲ ଜଳୁନାହିଁ । ନାଟ ତାମସାରେ ଦାନୀରୁ ତେଲ ନିଗାଡ଼ି ମଶାଲ ଧରି ବେଉସା ବାଲିକପୁଅର ବୁଡ଼ିଯାଇଛି । ଗୋଟିଏ ବିଜୁଳି



ଆଲୁଅରେ ଦାଣ୍ଡ, ଘର, ରାସ୍ତା, ସଭା ଓ ଯାନଯାତ୍ରା ଚହଟି ଉଠୁଛି । ଏ କି ପରିବର୍ତ୍ତନ । ଏ ସବୁ ଦିନେ ନାହିଁ ନଥିଲି କଥା ଥିଲା, ଅଶୁଣା ଓ ଅଦେଖା କଳଗାଉଣାର ଗୀତ ଶୁଣିବାକୁ ବୋହୂଭାଆଷୁଣୀ ବି ଧାଇଁ ଆସୁଥିଲେ । ଲୋକେ ଅବାକ୍ ହେଉଥିଲେ । ଧନ୍ୟ ଏଡ଼ିସନ୍ ! ତୁମ ନାମ ତ ପଛକୁ ପଡ଼ିଗଲା । ଏବେ ଗାଁ ଗାଁରେ ରେଡ଼ିଓ ।

ଆଗକାଳର ମାଟିବଂଶ ଅବଧାନ ଉଭେଇ ଗଲେଣି । ତାଳପତ୍ର ପୋଥିରେ ଡୋର ଦିଆଗଲାଣି । ଆଉ ବି ଓଡ଼ାଙ୍ଗ, ଫେଡ଼ାଙ୍ଗ, ହରିଗୁଣ, ଶୋଧିର ଗନ୍ଧ ନାହିଁ । କିଏ କହିବ, ଏ କଥା ଆମ

ଦେଶରେ ଦିନେ ଥିଲା ? ବଇଦ ବଣ୍ଟୁଆ ଓ ବାଉକର ବଥଫୋଡ଼ା ଏବେ ଶଙ୍କାସ୍ତ୍ରା ବଙ୍ଖାନ ହେଲାଣି । ଠୁଣୁଠୁଣୁକାରେ ଆଉ ଧନ୍ଦି ହେବାକୁ ନାହିଁ । ଏ ସବୁ ବଦଳି ଯାଇଛି ଯିବ । ଡାସିଆ ବାଉରର ଛାଇ ପଡ଼ିଲେ ଖପର। ଡିଆଁ ନନା ଛୁଆଁ ହେଉନାହାନ୍ତି । ନନାଙ୍କ ମନ ବଦଳି ଗଲାଣି ।

ପ୍ରକୃତିରେ ବି ସେଇ ପରିବର୍ତ୍ତନ । ନାଁକୁ ସିନା ଋତୁରାଜ ବସନ୍ତ । ଅଳ୍ପ କେତେଟା ଦିନପରେ ଖଇଫୁଟା ଖରା ମାଡ଼ିଆସୁଛି । ପାଣି ଟୋପାକ ପାଇଁ ହନ୍ତସନ୍ତ । ଲୋକ ବେଦମ୍ ହେଉଛି । ସେ ବି ଯାଉଛି । ଶୁଖିଲା ନଈ ନାଳରେ ପାଣି ପୂରିଯାଉଛି । ବିଲରୁ ବେଙ୍ଗ ବାହାରି ବଢ଼ିପାଣିରେ ଡିମ୍ବ ଦେଉଛି । ଘାସ କଅଁଳୁଛି । ଏହାପରେ ମାଡ଼ ଆସୁଛି ମାଘମାସର ବାଘ ପରି ଶୀତ । ଆଣ୍ଠୁ କୁଣ୍ଢାଇ ମନମାରି ଲୋକେ ବସୁଛନ୍ତି । ଋତୁ ବଦଳୁଛି, କାଳ ଗତି କରୁଛି । ତା ସଙ୍ଗେ ସଙ୍ଗେ ପ୍ରକୃତି ଶରୀର ନୂଆ ରୂପ ହେଉଛି ।

ଆମ ସମାଜରେ ମଧ୍ୟ ସେଇଆ । ନୂଆ ଘର, ନୂଆ ରାସ୍ତା ଓ ନୂଆ କାମ ବରାବର ଚାଲିଛି । ଛପର ନହୋଇ ଘର ବି ଭାଙ୍ଗୁଛି । ବଢ଼ି ପାଣିରେ ରାସ୍ତା ଜମି ଧୋଇଯାଉଛି । ମନୁଷ୍ୟ ପାଇଁ ଫେର ନୂଆ କାମ ଖୋଲୁଛି । ଗତ ବର୍ଷର କୂଅ ଏବର୍ଷକୁ ଅଧିକ ଗହୀର ହେଉଛି । ଖାଲ ପୋତି ଢିପ ହେଉଛି ଏବଂ ଢିପ ଖୋଳି ଖାଲ ହେଉଛି ।

ଆମ ଦେଶ, ସମାଜ ଓ ପ୍ରକୃତି ବଦଳି ଚାଲିଛି । ଏ ସବୁ ବଦଳୁଥିବ । ସୃଷ୍ଟି ବେଳରୁ ବା ମନୁଷ୍ୟର ଯେଉଁ ଦିନରୁ ହେତୁ ହେଲାଣି, ସେଦିନୁଁ ବଦଳୁଛି; ବଦଳିବ ମଧ୍ୟ । ଏହାକୁ କେହି ଅଟକାଇ ପାରିବନାହିଁ । ମହୀ ସ୍ଥିର ହୋଇ ରହୁନାହିଁ ବା ରହିବ ନାହିଁ ।

—ଦୁଇ—

# ପଥର ତଳେ ନା ପତର ତଳେ

ମନୁଷ୍ୟ ଜୀବନ କାହା ତଳେ, ପଥର ତଳେ ନାଁ ପତର ତଳେ ? ଆମ ଗାଁର ଏ ସାଧାରଣ ପ୍ରଶ୍ନ । ଉତ୍ତର ଏ ପାଖ ବା ସେପାଖ ଅବସ୍ଥାକୁ ଚାହିଁ କହି ଦିଆଯାଏ । ତେଣୁ ମୂଳ ପ୍ରଶ୍ନର ଠିକ୍ ଉତ୍ତର କଅଣ ?

ପତର ଗଛରୁ ଝଡ଼ିପଡ଼େ ଓ ଉଡ଼ି ବୁଲେ । ଗୋଟିଏ ଜାଗାରେ ପଡ଼ି ରହେନାହିଁ । ଓଲଟପାଲଟ ହେଉଥାଏ । ପତର ପବନରେ ଉପରକୁ ଉଠିଯାଏ, ତଳକୁ ଖସିପଡ଼େ ଓ ମାଟିରେ ବାଜି ଗଡ଼ି ଗଡ଼ି ଯାଏ । ଖଣ୍ଡିଆ ଭୂତରେ ଚକ୍କର ଦେଇ ବୁଲେ । ଅଥଚ ପଥର ପଡ଼ିଛି । ଉଠାଇଲେ ବି ଉଠିବା ମୁସ୍କିଲ । ଠେଲିଲେ ସହଜରେ ଟଳୁନାହିଁ, ପେଲିଲେ ବି ହଲୁନାହିଁ । ଯେଉଁଠି ସେଇଠି ରହିଛି । ପତର ହଲଚଲ ହେଉଛି, ପଥର ଅଟଳ ରହିଛି । ଖରା ବରଷା ପତରର ଏପାଖ ଓ ସେପାଖରେ ପଡ଼ୁଛି; କିନ୍ତୁ ପଥର ଯେପରି ସେପରି, ଅଚଳ ଓ ଅଟଳ ।

ମନୁଷ୍ୟ ଜୀବନ କଅଣ ଏଇଆ ? ମନଦୁଃଖରେ ଲୋକ କହେ, "ମୋ କପାଳ ପଥର ତଳେ । ମୁଁ ଯେଉଁ ଡାଳ ଧଇଲି, ସେ ଡାଳ ଭାଙ୍ଗିଲା । ମୋର ଫଟା ହାଣ୍ଡିରେ କାଦୁଅ ଲେସିଲେ କି ଫଳ ।" ଆମେ କଅଣ ଏଇ ନିରାଶ କଥା କହିବା ? ଆମର ସବୁ ସରିଛି ।

ଠିକ୍ ଏଇ କଥା କେତେ ଶିକ୍ଷକ କହନ୍ତି, "ସେ ଗଜ ମୂର୍ଖ ଚଲଣା ଚୋର । ପାଠଧୂଳି ତାଙ୍କ ବଂଶରେ ପଡ଼ନାହିଁ । ତାକୁ ଯେତେ ମାଠ, ସେ ସେହି ଦରପୋଡ଼ା କାଠ । ତାର, ଚାଟଶାଳୀକୁ ଯିବା ଆସିବା ସାର । ସେ ଯେପରି ଆସିଛି, ସେପରି ଫେରିବ । ତା ମୁଣ୍ଡରେ ଗୋବର ।" ଏପରି ହତାଶ ବାଣୀ କେତେକ ରୋଗ ବିଷୟରେ ବି ଶୁଣାଯାଏ । "ତା ଦେହରେ ବଡ଼ ରୋଗର ଛିଉ ।



ଏ ତ ନୂଆ ନୁହେଁ; ଏ ତାଙ୍କ ସାତ ପୁରୁଷୀ ଚାଲି ଆସିଛି । ରୋଗ ସିନା ବଢ଼ିବ ନାହିଁ; କିନ୍ତୁ କମିବ ନାହିଁ । ମା ପେଟରୁ ଏ ରୋଗ । ଏଥିରେ ଏହାର ଜନ୍ମ ଏବଂ ଏଥିରେ ଏହାର ଶେଷ ।" ପୋଲିସ

ଆନାର ବାବୁ ପଚାରନ୍ତି, "ଚୋର ତ ଚୋର, ସେ ପୁଣି ସାଧୁ ପାଲଟିବ କିପରି ? ନିମ୍ବ ମୂଳରେ ଗୁଡ଼ ଦେଲେ ସେ କଅଣ ମିଠା ଲାଗିବ ? ଦାଗି ଚୋରର ଦାଗ ଲିଭାଇବା ସମ୍ଭବ ନୁହେଁ । ଥରେ ଚୋରର ମିଠା ଚାଖିଲେ ଓ ମାମୁଁଘରକୁ ଗଲେ, ଜୀବନଯାକ ଚୋର ।"

ଏଇ କଥାକୁ ଆଉ ଟିକିଏ ଆଗେଇ କେତେକ ଲୋକ କହନ୍ତି—'ଯାହା ଦାଇଛି, ତାହା ପାଇବ' । ଷଠି ବୁଢ଼ୀ ଜନ୍ମବେଳେ ଯେଉଁ ଗାର ମାରିଛି, ତାକୁ ଲିଭାଇବ କିଏ ? କର, କପାଳ, କୋଷ୍ଠି—ଏଇତକ କଥାକୁ ବଦଳାଇବ କିଏ ? ଜନ୍ମରୁ ଯେଉଁ ଲକ୍ଷଣ, ଯେଉଁ କଳା, ଯେଉଁ ବୁଦ୍ଧି ଓ ବିଦ୍ୟା ସେଇଆ ରହିବ । ଆମ୍ବ କଅଣ ଆମ୍ବଡ଼ା ହେବ, ନା କାଉ କୋଇଲି ହେବ ? ଜନ୍ମରୁ ଏ ସବୁ ସ୍ଥିର । ଜନ୍ମବେଳେ ଯାହା ଲେଖିଛି, ସେଇଆ ଫଳିବ । ମନୁଷ୍ୟ ସ୍ୱଭାବ ପଥରଗାରେ । କଳାକୁ କିଏ ଗୋରା କରିବ, ନା ଗୋରାକୁ କିଏ କଳା କରିବ ? ମନୁଷ୍ୟ ସ୍ୱଭାବ ବଦଳିବ ନାହିଁ । ଏହା ଜନ୍ମରୁ ନିର୍ଦ୍ଦିଷ୍ଟ ଓ ସ୍ଥିର । ଜଡ଼ା କ'ଣ ବେଦ ଗାଇବ ? ଜନ୍ମରୁ ସବୁ ଠିକ୍‌ଠାକ୍ ହୋଇ ରହିଥାଏ ।"

ଏ ବିଶ୍ୱାସ ବିଲ୍‌କୁଲ ଭୁଲ୍, ମିଛ । ରୋଗୀ ଭଲ ହେଉଛି । ରୋଗୀର କାନ୍ଦ ଆଉ ରହୁନାହିଁ । ସ୍ୱାସ୍ଥ୍ୟର ହସ ସେ ହସୁଛି । ଯେଉଁ ପିଲା ଏହି ଚାଟଶାଳୀରେ ଫେଲ୍ ହେଉଥିଲା, ସେ ଆର ଚାଟଶାଳୀରେ ଭଲ କଲା । ଯିଏ ଏଇ ଗୁରୁଜୀଙ୍କୁ ଦେଖି ଡରୁଥିଲା, ମା'ର ପଣତ କାନରେ ମୁହଁ ଲୁଚାଉଥିଲା, ଭୟରେ ବରଡ଼ାପତ୍ର ପରି ଥରୁଥିଲା, ସେ ଅନ୍ୟ ଗୁରୁଜୀଙ୍କ ପାଖରେ ବସୁଛି, ତାଙ୍କ କଥା ଶୁଣୁଛି, ତାଙ୍କ କଥା ମାନୁଛି । "ମୁଁ ପଢ଼ିବି, ଏଇ ଗୁରୁଜୀ ଭଲ"

ଏହା ଭାବ ସେ ଆଗେଇ ଚାଲିଛି । ତାର ଆତ୍ମବଳ ବଢ଼ିଛି । ରୋଗୀ ଭଲ ହେବ, ଡାକ୍ତର ଏହା କହୁଛନ୍ତି । ତାର ରୋଗ ଛାଡ଼ିଯିବ । ଏ ବିଶ୍ୱାସ ଜନ୍ମିଛି । ଚୋର ବି ସାଧୁ ହେଉଛି । ମନୁଷ୍ୟ ସ୍ୱଭାବ ବଦଳେ । ଏହା ପଥର ଗାରେ ।

ମନୁଷ୍ୟ ସ୍ୱଭାବ ବଦଳୁ ନଥିଲେ ଶିକ୍ଷା ବ୍ୟବସ୍ଥା କାହିଁକି ରହନ୍ତା ? ଯେ ପିଲାଦିନରେ ନପଢ଼ିଛି, ସେ ବୁଢ଼ା ବୟସରେ ବି ଶିଖୁଛି । ନୈଶ ବିଦ୍ୟାଳୟ ଚାଲୁଛି । ଯୁବକଦଳ ଗଠନ କରାଯାଉଛି । ଯାହା ହୋଇନାହିଁ ବାଲ୍ୟକାଳେ, ତାହା ହେବନାହିଁ କାଳେ କାଳେ—ଏକଥା ଆଉ ଠିକ୍ ନୁହେଁ । ଅପାଠୁଆ ଲୋକମାନେ ଏବେ ବହି ଧରି ପଢ଼ୁଛନ୍ତି । ରୋଗୀ ଆରୋଗ୍ୟ ହେଉଛି । ଲାଞ୍ଚୁଆ ବା ମିଛୁଆ ଲୋକ ସାଧୁ ପାଲଟି ପାରୁଛି । ସ୍ୱଭାବର ପରିବର୍ତ୍ତନ ହେଉଛି । ଦାଗୀ ଚୋର ଘରକରଣା କରି ନିଜ ବେଉସାରେ ଚାଲୁଛି । ଭଙ୍ଗା ଘର ଯୋଡ଼ି ଯାଉଛି । ଫଟା ମନ ମିଶି ଯାଉଛି । ମନୁଷ୍ୟ ସ୍ୱଭାବ ପଥର ଗାରେ । ଏହା ଓଲଟ ପାଲଟ ହେଉଛି ।

ମନୁଷ୍ୟ ସ୍ୱଭାବ ପଥର ପରି ଅଚଳ ହୋଇଥିଲେ ସାମାଜିକ ପରିବର୍ତ୍ତନ ହୁଅନ୍ତା କିପରି ? ସମାଜର ପରିବର୍ତ୍ତନ ପାଇଁ ଆମେ ନାନା ଯୋଜନା କରୁଛୁ । କେଉଁ ବିଶ୍ୱାସରେ ? ଲୋକମାନେ ମାନଧାତାଆ ଢଙ୍ଗ ଛାଡ଼ି ନୂଆ ରୀତିରେ ଚାଷ କଲେଣି । ଅଳିଆରୁ କମ୍ପୋଷ୍ଟ କଲେଣି । ବିଷ୍ଠା ସାର ହେଲାଣି । ଗୋରୁ ଗାଈ ହାଡ଼କୁ ଛୁଉଁ ନଥିଲେ, ତାକୁ ଏବେ ଚୂରି ସାର କଲେଣି । ଯେଉଁ ଠାକୁରାଣୀଙ୍କ ପାଖରେ ପଶୁବଳି ପୁରୁଷାନୁକ୍ରମେ ଦିଆଯାଉଥିଲା, ତାହା ଏବେ ଆଉ ନାହିଁ । ଏସବୁ ପରିବର୍ତ୍ତନ ହେଲା ବା ହେଉଛି କିପରି ? ମନୁଷ୍ୟ ବଦଳୁଛି ।

ଆମେ ବଣ ଜଙ୍ଗଲର ଲୋକଙ୍କ ବ୍ୟବହାର ଛାଡ଼ି ଯାହାକୁ ସଭ୍ୟତା ବୋଲି କହୁଛୁ, ସେପରି ବ୍ୟବହାର ଶିଖିଲୁ କିପରି ? କଥା କହିବାର ଢଙ୍ଗ, ଲୁଗା ପିନ୍ଧିବା ରୀତି, ରାନ୍ଧିବା, ଖାଇବା ଓ ସୁଖରେ ରହିବାର ଉପାୟ ଆମେ ନୂଆ ନୂଆ ଶିଖୁଛୁ । ଏ ସବୁ ସମ୍ଭବ ହେଲା କିପରି ? ମନୁଷ୍ୟ ସ୍ୱଭାବ ବଦଳିବା ଫଳରେ ସଭ୍ୟତାର ଜନ୍ମ । ଆଦିବାସୀମାନେ ଆମ ସମ୍ପର୍କରେ ଆସି ଆମ କୁହାକୁହି ସଭ୍ୟତାର ଛାପ ନେଲେଣି । ଜଣେ ଲୋକର ବା ଗୋଟିଏ ସମାଜର ପ୍ରଭାବ ଅନ୍ୟ ଲୋକ ବା ସମାଜ ଉପରେ ପଡ଼ୁଛି । ସେ ପ୍ରଭାବିତ ହେଉଛି; ସେ ବଦଳୁଛି ।

—ତିନି—

## ଛନ୍ଦାଛନ୍ଦି

ଆମ ଗାଁରେ ଭଲ ପିଇବା ପାଣି ମିଳୁନାହିଁ । ଦଳେ ଯୁବକ କାମ ନପାଇ ପାଟିତୁଣ୍ଡ କରୁଛନ୍ତି । ମଧୁ ବେହେରା ବେମାର ପଡ଼ି ଚିକିତ୍ସା ଅଭାବରୁ ମରିଗଲା । କଇଗୁଡ଼ା ଗାଁରେ ଚିକିତ୍ସା ମିଳୁନାହିଁ । ନଈବଢ଼ିରେ ଚଳହିଁ ଜମି ପ୍ରତିବର୍ଷ ଧୋଇଯାଉଛି । ଲୁଗାପଟାର ଦାମ ଚଢ଼ିଯିବାରୁ ବିବାହ ବ୍ରତରେ ବଡ଼ ହଇରାଣ ହେବାକୁ ପଡ଼ୁଛି । ଏହିପରି ଆହୁରି କେତେ । ଏସବୁ ଆମର ସମସ୍ୟା । ଚିନ୍ତା କରିବାର କଥା । ଯୌତୁକ ଯୋଗାଡ଼ କରି ନପାରିବାରୁ ହରିବାବୁଙ୍କ ଝିଅ ବାହା ହୋଇ ପାରୁନାହିଁ । ଏହା ହରିବାବୁଙ୍କର ସମସ୍ୟା । ହରିବାବୁ ହଇରାଣ ହେଉଛନ୍ତି । ତାଙ୍କ ମୁଣ୍ଡ ବିଗିଡ଼ି

ଯାଇଛି । ଏହା ଜଣକର ସମସ୍ୟା । ଛପର ନହେବାରୁ ଗୋପିଆ ଘରେ ପାଣି ଗଳୁଛି । ଏହା ତାଙ୍କ ଘରର ସମସ୍ୟା । ବର୍ଷା ହେଲେ ମୁଣ୍ଡ ଗୁଞ୍ଜିବାକୁ ଗୋପୀର ପିଲାମାନେ ସ୍ଥାନ ପାଉନାହାନ୍ତି । ଛୁଆମାନଙ୍କୁ ଜର, ସର୍ଦ୍ଦି । ସେମାନେ ଏ ବିଷୟରେ ଚିନ୍ତିତ । ତାଙ୍କ ଗାଁରେ ସ୍କୁଲ ନଥିବାରୁ ଛୁଆମାନେ ଦିଅକ୍ଷର ପଢ଼ିପାରୁନାହାନ୍ତି । ଏଇଟା ସେ ଗାଁର ସମସ୍ୟା । ଗାଁ ଲୋକେ ସ୍କୁଲଟିଏ ବସାଇବାକୁ ଚିନ୍ତିତ । ବଢ଼ି ଓ ମରୁଡ଼ି ଆମ ଓଡ଼ିଶାର ବଡ଼ ସମସ୍ୟା । ଏହା ଆମର ଚିନ୍ତାର କଥା । କେଉଁ ବର୍ଷ ଜଳ ଗହଳେ ଆମର ସର୍ବନାଶ ଏବଂ ଆଉ କେଉଁ ବର୍ଷ ଜଳ ବିହୁନେ ସର୍ବନାଶ । ଏଣୁ ଏ ଦୁଇଟି ଆମ ରାଜ୍ୟର ସମସ୍ୟା । ସାମ୍ପ୍ରଦାୟିକ ଓ ପ୍ରାଦେଶିକ



ଏକତା ଭାରତର ବିରାଟ ସମସ୍ୟା । ଭାରତରେ ବହୁ ରାଜ୍ୟ ଏବଂ ସମ୍ପ୍ରଦାୟ ଅଛି । ବିଭିନ୍ନ ରାଜ୍ୟ ଏବଂ ସମ୍ପ୍ରଦାୟ ମଧ୍ୟରେ କଳହ ଲାଗିଲେ ଭାରତ ପଛେଇଯିବ । ତେଣୁ ଏହାଏକ ଭାରତୀୟ ସମସ୍ୟା । ଶାନ୍ତି ସ୍ଥାପନ ପୃଥିବୀର ସମସ୍ୟା । ଲୋକସଂଖ୍ୟା ହୁହୁ ବଢ଼ୁଛି । ପରିବାରରେ ଆମେ ହଇରାଣ ହେଉଛୁ । ପାଠଶାଳାରେ ଥାନ ମିଳୁନାହିଁ । ଆମ ଯୋଜନାର ସୁଫଳ ସମସ୍ତଙ୍କୁ ମିଳୁନାହିଁ । ଏହା ପରିବାରର, ରାଜ୍ୟର, ଆମ ଦେଶର ଓ ବିଶ୍ୱର ସମସ୍ୟା । ଏହିପରି ଅନେକ ସମସ୍ୟା । ଏହା ଜଣେ ଲୋକର, ଗୋଟିଏ ପରିବାରର, ଏକ ସ୍ଥାନର, ଗୋଟିଏ ଅଞ୍ଚଳର, ଗୋଟିଏ ରାଜ୍ୟର, ଗୋଟିଏ ଦେଶର ବା ପୃଥିବୀର ହୋଇପାରେ ।



ସମସ୍ୟା ବ୍ୟକ୍ତିଗତ, ପାରିବାରିକ, ସ୍ଥାନୀୟ, ଆଞ୍ଚଳିକ, ଜାତୀୟ, ଭାରତୀୟ ବା ବିଶ୍ୱ-ବ୍ୟାପୀ ହୋଇପାରେ ।

ଦିନେ ରାମ ଜଙ୍ଘରେ ଟଙ୍କା ଆକାରର ଛଉ ଦେଖାଗଲା । ଜାଗାଟି କାଲୁଆ ପଡ଼ିଗଲା । ସେ ମା'କୁ ଦେଖାଇଲା । ମା' ଏହାକୁ ବଡ଼ ରୋଗ ବୋଲି ଚିହ୍ନିଲେ । ଏଇ ହେଲା ରାମର ବ୍ୟକ୍ତିଗତ ସମସ୍ୟା । ପୁଅ ବାସନ୍ଦ ହେବ, କେହି ଝିଅ ଦେବେନାହିଁ ଓ ଘରର ନାଁ ନିନ୍ଦା ହେବ । ଏହି ଭୟରେ ଏ କଥା ଦି'କାନଛଡ଼ା ତୃତୀକାନ ହେଲାନାହିଁ । କଥାଟି ଛପି ରହିଲା । ବୋହୂ ଆସିଲା । ପିଲାଛୁଆ ହେଲେ । ସମସ୍ତଙ୍କର



ସେଇ ଛଉ । ରାମର ବ୍ୟକ୍ତିଗତ ସମସ୍ୟା ଆଜି ସେ ପରିବାରର

ସମସ୍ୟା ହେଲା । ସୁଅ ଦାଣ୍ଡହାଟରେ ବୁଲିଲା । ଗାଁ ଛୁଆଙ୍କ ସାଙ୍ଗରେ ମିଶିଲା । ସେମାନଙ୍କ ସଙ୍ଗରେ ଖେଳିଲା । ଗାଁ ପିଲାଙ୍କ ଦେହକୁ ଛଇ ଡେଇଁଲା । ଏହିପରି ଗାଁରେ ବ୍ୟାପିଲା । ଏହା ଏବେ ଗାଁର ସମସ୍ୟା ହେଲା । ଗାଁଟାଯାକ କୁଷ୍ଠରୋଗୀ । ସେଠୁ ସେ ରୋଗ ଖେଳିବୁଲିଲା । ଆଉ କେତେ ଲୋକ ବି ସେ ରୋଗରେ ପଡ଼ିଲେ ।



ଦୁଇଟି ସାନ ଦେଶ ମଧ୍ୟରେ ସାମାନ୍ୟ ବିବାଦ ସାରା ପୃଥିବୀର ଦୁଇଟାଯାକ ମହାଯୁଦ୍ଧରେ ପରିଣତ ହେଲା । ଝିମିଟି ଖେଳରୁ ମହାଭାରତ ଯୁଦ୍ଧ ହେଲା । ବଡ଼ ହେବାର ବାସନା

ହିଟଲରଙ୍କର ବ୍ୟକ୍ତିଗତ ସମସ୍ୟା ଥିଲା । ସେ ପୁଣି ପୃଥିବୀରେ ନିଆଁ ଲଗାଇ ଦେଲା । ତେଣୁ ସମସ୍ୟା ସୀମିତ ନୁହେଁ । ଏହାର ପରିସର ବଢ଼େ । ବ୍ୟକ୍ତିରୁ ପରିବାର, ସେଥିରୁ ଅଞ୍ଚଳ, ଦେଶ ଓ ଅନ୍ୟଆଡ଼କୁ ଯାଇପାରେ ।

କାମ ନାହିଁ, ତେଣୁ ଦାମ ପାଠ ପଢ଼ି, ମାଠ ପିନ୍ଧି, ଖଟ ଉପରେ ଖାଲି କାଠ ଘରି ଶୋଇଲା । ବସି ଖାଇଲେ ନଈବାଲି ସରେ । ଦାମ ବେକାର—ଏଇ ହେଲା ତାର ବ୍ୟକ୍ତିଗତ ସମସ୍ୟା । ଲୁଣ ସିନା ହାଣ୍ଡି ଖାଏ; କିନ୍ତୁ ଏ ଚିନ୍ତା ଦାମର ମୁଣ୍ଡ ଓ ଗଣ୍ଡି ଖାଇଗଲା । ସେ କମି ଦ'ମାଣ ବିକି ଦ'ହଜାର ଟଙ୍କାରେ ଗୋଟିଏ ଛୋଟିଆ ଧାନ କଳ ଗାଁ ମୁଣ୍ଡରେ ବସାଇଲା । କଳ ଚାଲିଲା, ଦାମକୁ କାମ ମିଳିଲା । ବଳଦ ପିଠିରେ ଛେଲା ଲଦି ବା ଭାର-



ବାହୁଙ୍ଗିରେ ଲୋକେ ଧାନ ବୋହି ଆଣିଲେ । ଚାରି ଅଣାରେ ଚାରି ନଉତି ଚାଉଳ ହେଲା । ନାଲି ଚାଉଳ ଧଳା ହୋଇଗଲା । ଦାମର ବ୍ୟକ୍ତି-ଗତ ସମସ୍ୟା ଦୂର କରିବାକୁ ଯାଇ ଫଳ ବିଷମ । ଢିଙ୍କିଏବୁ ସ୍ୱର୍ଗକୁ ଗଲେ । ରାଣ୍ଡୀଖଣ୍ଡୀଙ୍କର ଧାନକୁଟା ବନ୍ଦହେଲା । ସେମାନେ କାମ ନପାଇ ଚୋରି କଲେ । ବୋହୂମାନେ ଧାନକୁଟା ଛାଡ଼ି ପିଟାପିଟି ଲାଗିଲେ । କଳମଞ୍ଜି ବୁଣାଗଲା । ଅଲସୁଆମିରୁ ନାନା

ରୋଗ ମଧ୍ୟ ହେଲା । ଚିଙ୍କିକୁଟା ନାଲି ଚାଉଳ ଆଉ ମିଳିଲା ନାହିଁ । କଳ ଚାଉଳ ଧଳା, ଆଖିକୁ ଭଲ; କିନ୍ତୁ ଦେହକୁ ଖେଲ । ଦାମର ବେକାର ସମସ୍ୟା ଦୂର କରିବାକୁ ଯାଇ ସମାଜରେ ବେକାର, ଚୋର, କଳହ, ରୋଗ ଓ ଆଳସ୍ୟ ବଢ଼ି ଚାଲିଲା ।

ସମାଜର ସମସ୍ୟା ସବୁ ପରସ୍ପର ଛନ୍ଦାଛନ୍ଦି । ସମସ୍ୟା ବ୍ୟକ୍ତିର ପରିବାରର, ଗ୍ରାମର, ସମ୍ପ୍ରଦାୟର, ରାଜ୍ୟର, ଦେଶର ବା ପୃଥିବୀର—ଯାହାର ହେଉ ପଛକେ ବିବେଚନା ସମାଧାନ ନକଲେ ଗୋଟିଏ ଦିଗରୁ ଯାଇ ଅନ୍ୟ ଦିଗରେ ଏହାର ଫଳ ପଡ଼ିପାରେ । ବିଭିନ୍ନ ସମସ୍ୟା ମଧ୍ୟ ପରସ୍ପର ସମ୍ପୃକ୍ତ । ଜଣେ ଲୋକ ଖୁବ ବେଶି ଗୁଡ଼ାଏ ଖାଇବାରୁ ତାର ଅଜୀର୍ଣ୍ଣ ଝାଡ଼ା ହେଲି । ପୁଣି ଖାଇବାର ଇଚ୍ଛା ମଧ୍ୟ ବଢ଼ିଲି । ଅଧିକ ଖାଇବାରୁ ଝାଡ଼ା ବେଶି ହେଲି । ଝାଡ଼ା ଯେତେ ଅଧିକ ହେଲି, ଖାଇବାର ଇଚ୍ଛା ସେତେ ବଢ଼ିଲି । ପୁଣି ଅଧିକ ଖାଇବାରୁ ଝାଡ଼ା କ୍ରମେ ବେଶି ହେଲି । ଗୋଟିଏ ଅନ୍ୟଟିକୁ ବଢ଼ାଇ ଦେଲି । ଫଳ ହେଲି ମୃତ୍ୟୁ । ରକ୍ତ ସମ୍ପର୍କ ପରି ପୁଅ, ନାତି, ଅଣନାତି, ପଣନାତି ସୂତ୍ରରେ ସମସ୍ୟାସବୁ ପରସ୍ପରକୁ ଡାକି ଆଣନ୍ତି । ସେମାନେ ସବୁ ଲଗାଲଗି ଓ ଛନ୍ଦାଛନ୍ଦି । ସମ୍ପର୍କ କେବଳ ଧାଡ଼ିକିଆ ନୁହେଁ । ଆଗ ପଛକୁ, ପଛ ଆଗକୁ, ପୁଣି ଆଗ ପଛକୁ···ଏହିପରି ଲାଗିଥାଏ ।

ସୁକୁଟି ସାହୁ ପାଠ ପଢ଼ିଲିନାହିଁ । ମୂର୍ଖ ହେଲି । କୃଷିବାସ କଲି । ହଳେ ବଳଦରେ ବଳିବାଡ଼ି ଧରି ଚାଲିଲି । ହଳ ଟିଙ୍ଗିଟିଙ୍ଗି ଉପରେ ଘାସ । ଦି' ଓଡ଼ କୃଷକର ଦି' ମୁଠା ଧାନ ଛାଟିଦିଏ । ଆମଦାନୀ ବର୍ଷକୁ ବର୍ଷ କମିଲି । ରୋଜଗାର କମିଗଲି । ପେଟପୂରି ଦାନାମୁଠେ ପେଟରେ ପଶିଲିନାହିଁ । ଜର ହେଲି । ପଥି ଖାଇବାକୁ

ପଇସା ନାହିଁ । ଦେହର ବଳ କମିଗଲା । ଜମିରେ ହାଡ଼ଭଙ୍ଗା ଖଟଣି ଆଉ ଖଟି ପାରିଲା ନାହିଁ । ବଳ ହଟିଲା । ହିଡ଼ମୁଣ୍ଡରେ ବସି ବସି ଆସିଲା । ବିଲବାଡ଼ିରେ ତଦାରଖ କରିପାରିଲା ନାହିଁ । ଫଳରେ ଜମି ପୂରି ବାଲୁଙ୍ଗା କଆଁରି ହେଲା । ଧାନ ଅମଳ କମିଗଲା । ଗାଁ ଲୋକେ ପଢ଼ୁଛନ୍ତି । ମନର ବଳ ନ ଥିବାରୁ ପଢ଼ାପଢ଼ିରେ ଟିକିଏ ମନ ଦେଲା ନାହିଁ । ଗାଁ ଲୋକେ ଉନ୍ନତ ଚାଷ କଲେ ।



ଗ୍ରାମସେବକଙ୍କଠାରୁ ନୂଆ ସାର ଓ ଭଲ ବିହନ ଲଗାଇଲେ । ତାର ତେଣିକି ମନ ନାହିଁ । ଜମି ପଡ଼ିଆ ପଡ଼ିଲା । ଖାଇବାକୁ ନ ପାଇ ସେ ବେହାଲ ହେଲା । ପୁରୁଣା କର ତ ଥିଲା । କର ମାଡ଼ି ବସିଲା । ଶେଷକୁ ଉପାୟ ନପାଇ ମଲା ।

ସମସ୍ୟାଗୁଡ଼ିକ ଅବସ୍ଥା କାଏଲ କରିଦିଅନ୍ତି । ସମସ୍ୟାଟି ଆମକୁ କେବଳ ଏକାକୀ ଜଣାପଡ଼େ; କିନ୍ତୁ ସେସବୁ ଛନ୍ଦାଛନ୍ଦି । ସମସ୍ୟା ସହଜ ଓ ସରଳ ନୁହେଁ । ଏହା କଠିନ ଓ ଜଟିଳ । ଗୋଟିଏ ଓ ଅନ୍ୟଟି ଲଗାଲଗି କରି ଥାଏ । ପରସ୍ପରର ପ୍ରଭାବ ଚକ୍ରାକାରରେ ଚାଲିଥାଏ । ସୁଧାରିବାକୁ ଗଲେ ଏକଥା ବୁଝିବା ଦରକାର । ଗଭୀର ଚିନ୍ତା କରିବା ଦରକାର । ବିଭିନ୍ନ ଦିଗରୁ ସମାଜକୁ ଏବଂ ସମାଜର ସମସ୍ୟାକୁ ବୁଝିବା ଉଚିତ । ତା ନହେଲେ ଆଳୁ ଖୋଳୁ ଖୋଳୁ ମହାଦେବ ବାହାରିବେ ।

ଲୋକଙ୍କୁ ଶିକ୍ଷିତ କରିବା ସମାଜର ସମସ୍ୟା । ସେଥିପାଇଁ ସ୍କୁଲ କଲେଜ ବସିଲା । ଲୋକମାନେ ପାଠ ପଢିଲେ । ପାଠପଢ଼ା

ଭଲ କଥା । ଯଦୁ ସାହୁଙ୍କର ପୁଅ ମଧୁ ଖୁବ୍ ବେଶି ପାଠ ପଢ଼ିଥିଲେ । ଘର ପାଖରେ କୁଣ୍ଟା କେରେକୁ ଦ'ଖଣ୍ଡ କରନ୍ତି ନାହିଁ । ପାଲଟା ଲୁଗା ଧୋଇ ଶୁଖାନ୍ତି ନାହିଁ । ଯଦୁସାହୁଙ୍କ ବେପାର ହିସାବ ରଖିବା ପାଇଁ ଅମଲା ଅଛନ୍ତି । ମଧୁ ଏ ସବୁ କାମ କରିବେ ନାହିଁ । ରମେଶଙ୍କର ଅବସ୍ଥା ଠିକ୍ ସେଇଆ । ବହୁତ ପାଠ ପଢ଼ିଛନ୍ତି; କିନ୍ତୁ ବାପାଙ୍କ କୃଷି ଜମିରେ ହାତ ଲଗାନ୍ତି ନାହିଁ । ଖାଲି ବସିବେ ପଛକେ, କୃଷିକାମ କରିବେ ନାହିଁ । ମଧୁ, ରମେଶ—ଏପରି ଆଜି କେତେ ପିଲା ପାଠ ପଢ଼ିଛନ୍ତି ସତ, କାମ କରିବେ ନାହିଁ । ଏମାନେ ବେକାର । ବେକାର ଲୋକ ଅଳସୁଆ ହୁଏ । ଲୋକଙ୍କୁ ଶିକ୍ଷିତ କରିବା ପାଇଁ ଯେଉଁ ଶିକ୍ଷା ଦିଆଗଲା, ତଦ୍ଦ୍ୱାରା କୁଫଳ ଫଳିଲା । ଦିଅଁ ଗଢ଼ୁଗଢ଼ୁ ବାନର ହେଲା । ଶିକ୍ଷିତ ମନୁଷ୍ୟ ତିଆରି କରିବାକୁ ଯାଇ ବେକାର ସମସ୍ୟା ଆସି ପହଞ୍ଚିଲା । ଆଳସ୍ୟ ମଧ୍ୟ ମାଡ଼ି ବସିଲା । ଶିକ୍ଷା ଏପରି ହେବ, ଯଦ୍ଦ୍ୱାରା ସମାଜରେ ଯେଉଁ ପ୍ରକାର ଲୋକର ଆବଶ୍ୟକତା ଅଛି, ସେପରି ଲୋକ ମିଳିବେ । କୃଷୀ, କାରିଗର, ଡାକ୍ତର, ଶିକ୍ଷକ, ଅମଲା—ଏପରି ସବୁ ପ୍ରକାରର ଲୋକ ବାହାରିବା ଉଚିତ । ମନୁଷ୍ୟ ଓ ସମାଜର ଆବଶ୍ୟକତା ଶିକ୍ଷାରେ ମେଳ ଖାଇବା ଦରକାର ।

ପୁଣି ଆମ ଦେଶରେ ଲୋକ ଦିନକୁ ଦିନ ବଢ଼ିଲେ । ଲୁଗାପଟା ଅଧିକ ଦରକାର ହେଲା । ଆଗକାଳର ଆମ ଗାଁଗଣ୍ଡାର ବୁଣାଳୀ ଯେଉଁ ଲୁଗା ବୁଣିଲେ, ସେଥିରେ ଲୋକଙ୍କର ଅଭାବ ମେଣ୍ଟିଲା ନାହିଁ । ଲୁଗା ବି ଶସ୍ତା ହେଲାନାହିଁ । ଅଳ୍ପ ସମୟରେ ବେଶି ଲୁଗା ତିଆରି କରି ଲୋକଙ୍କୁ କମ୍ ଦାମରେ ଯୋଗାଇବା ହେଲା ଆମର ସମସ୍ୟା । ଏହି ସମସ୍ୟାର ସମାଧାନ ପାଇଁ ଲୁଗା କଲ ବସିଲା, ଭଲ କଥା । ବହୁତ ଲୁଗା ଦୋକାନରେ ଭର୍ତ୍ତି

ହୋଇଗଲା, ଲୁଗା ବି ସହଜରେ ମିଳିଗଲା, ଯେତେ ଖୋଜିବ ସେତେ । ଏପଟେ ଘରେ ଘରେ ବୁଣାଳୀ ନକମା ହୋଇ ବସିଲେ । ସେମାନଙ୍କ ବେଉସା ବୁଡ଼ିଲା । ପରିବାରଟାଯାକ ନକମା । ଭୋକ ଉପାସରେ ଓ ଅଭାବରେ ସ୍ୱଭାବ ନଷ୍ଟ ହେଲା, ତନ୍ତରେ ବୁଢ଼ିଆଣୀ ବସା କଲା । ପୁଣି ହାତ ବୁଣା ଲୁଗା ପିନ୍ଧିବାର ଅଭ୍ୟାସ ଲୋକଙ୍କର କମିଗଲା । ଆବର୍ଜନାରେ ପୂରି ଉଠୁଛି । ସବୁଠେଲେ ପାଟିତୁଣ୍ଡ । ଶାନ୍ତି କାହିଁ ? ସ୍ୱାସ୍ଥ୍ୟ ବା କାହିଁ ?



ଦଶହାତୀ ଲୁଗାଖଣ୍ଡିକ ବୁଣିସାରି ମେଲିଇ ଦେଲାବେଳକୁ ଏ ବିରାଟ ଓ ବିଚିତ୍ର ସୃଷ୍ଟି ଦେଖି ବୁଣାକାର ମନ ପୂରି ଉଠୁଥିଲା । ଲୁଗାକଲରେ କାମ କରୁଥିବା କୁଲି ସେ ଆନନ୍ଦ ପାଉନାହିଁ ।

ରାତ ପାହିଲାବେଳକୁ ଲୁଗା ନେବାପାଇଁ ବୁଣାଳୀ ଦୁଆରେ ଲୋକ ରୁଣ୍ଡ । କରଆ, ପାଞ୍ଚି, ବେଢ଼ାଣ, ଖଦ୍ଦ, ବଉଳପାଟ, ମାଣିଆବନ୍ଧି ଯୋଡ଼—ଯେତେବେଳେ ଯାହା ଦରକାର, ରଙ୍କପର କେତେ ଖୁସାମତରେ ବୁଣାଳୀ ଦୁଆରୁ ନେଇ ପଳାଉଛନ୍ତି । ବୁଣାଳୀର ଗର୍ବର ସୀମା ନାହିଁ । ସେ ଭାବନା ଲୁଗାକଲ କୂଳର ନାହିଁ । ଲୋକେ ତାକୁ ଆଦର କରୁ ନାହାନ୍ତି । ତାକୁ ଚହ୍ନେ କିଏ ? କଲ ଲୋକଙ୍କ ଲୁଗା ବୁଣୁଛି । ଲୁଗାକଲ ବସାଇବା ଫଳରେ ଦାଆଁ ଗଢ଼ୁ ଗଢ଼ୁ ବାନର ହେଲା । ଆନନ୍ଦ, ସନ୍ତୋଷ ଓ ଗର୍ବ କାହିଁ । ଲୁଗା-ବୁଣାର କଳା ବି ବୁଡ଼ି ଯାଉଛି ।

ଆମ ଜନସଂଖ୍ୟା ବଢ଼ୁଛି । ସହର ବଜାର ମୁଣ୍ଡ ଟେକୁଛି । କଲ କାରଖାନା ହେଉଛି । ବହୁ ଲୋକ ଏକାଠି ହେବାରୁ କଳ-ତକରାଳ ହେଉଛି । ବୃକ୍ଷ ଲତାକୁ କାଟି ସଫାକରି ଦିଆ ଯାଉଛି । ମାଟିମା ନଷ୍ଟ ହେଉଛି । ଲୋକଙ୍କ ଭିତରେ ଚାରିଆଡ଼ ଅଳିଆ ସମସ୍ୟାର ସମାଧାନ ବେଳରେ ଆମକୁ ଚିନ୍ତା କରିବାର କଥା । ଚାରିଆଡ଼କୁ ଦେଖିବାର କଥା । ବିଚାରିବା ଉଚିତ । ଏହି ସମୂହ ଭାବନା ନ ରହିଲେ ଆମ ଦାଆଁ ବାନର ହେବେ । ଆମ ଉଦ୍ଦେଶ୍ୟ ପୂର୍ଣ୍ଣ ହେବ ନାହିଁ । ଆମକୁ ଲଙ୍କା ପୋଡ଼ା ମାଙ୍କଡ଼ ହଇରାଣ କରିବ ।

ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟ, ବସ୍ତ୍ର, ଗୃହ ପ୍ରଭୃତିର ସମସ୍ୟା ପରସ୍ପର ବିଜଡ଼ିତ । ଗତକାଲି, ଆଜି ଓ ଆସନ୍ତା କାଲି ପରସ୍ପରକୁ ଲାଗିଛି । ଏ ଦେଶ, ସେ ଦେଶ ଓ ବହୁ ଦୂର ଦେଶ ପରସ୍ପରକୁ ଛୁଇଁଛି । ଗୋଟିଏ ଦେଶ ନୁହେଁ, ଅନେକ ଦେଶ, କିନ୍ତୁ ସବୁ ଦେଶ ଲଗାଲଗି । ଏପାଖ, ସେପାଖ ଓ ଆରପାଖ ପାଖେଇ ଯାଇଛି ।

ଏହି କଥା ବିଚାର କରି ସମସ୍ୟାର ସମାଧାନ କରାଯିବ। ନୋହିଲେ 'ଦେଉଁ ଗଡ଼ୁ ଗଡ଼ୁ ବାନର।

— ଚାରି —

## ମନର ଭୋକ

ଭୋକରେ ଭାତ ଓ ଶୋଷରେ ପାଣି—ଏଇ ଦୁଇ କଥା ଆଜିକାଲର ନୁହେଁ, ବହୁଦିନରୁ ଏହି କଥା ଚାଲି ଆସୁଛି। ଖାଇବା ଓ ପିଇବା ଦିନକିଆ କଥା ନୁହେଁ, ସବୁଦିନିଆ। ମନୁଷ୍ୟ ଏ ପୃଥିବୀକୁ କେବେ ଆସିଲା କେଜାଣି ? ସେ ଦିନରୁ, ସୃଷ୍ଟି ଆରମ୍ଭରୁ ବରାବର ଏକଥା ଲାଗି ରହିଛି। ଭୋକକଲେ ଦାନା ମୁଠେ ପେଟକୁ ଯାଉଛି। ଖାଲି ପେଟ ଭର୍ତ୍ତି ହେଉଛି, ଫେର ବି ଭୋକ ଲାଗୁଛି। ଅବିରତ ଏଇ କଥା ଚାଲିଛି। ଛୁଆଟିଏ



ଜନ୍ମ ହେବାମାତ୍ରେ ପାଟି ପାକୁପାକୁ କରୁଛି। ଜୀବନ ଶେଷପର୍ଯ୍ୟନ୍ତ ଏଇ କଥା ଚାଲୁଛି। କେବଳ ଆମ ଏଠି ନୁହେଁ, ସାରା ଜଗତରେ ଏଇ କଥା ଚାଲିଛି। ସବୁ ଦେଶରେ ଏଇଆ। ରାତିରେ ପେଟେ ଖାଇ ଅଜଗର ସାପ ପରି ଶୋଇଲୁ। ରାତି ପାହିଲାବେଳକୁ ସେ ସବୁ କୁଆଡ଼େ ଗଲା ? ଫେର ଭୋକ ଓ ଶୋଷ ହେଉଛି।

ପେଟରେ ଏଇ ସବୁଦିନିଆ ଭୋକ ପରି ମନ ବି ଭୋକିଲା ହୁଏ । ଆଜି ନୁହେଁ, ମନୁଷ୍ୟ ଏ ସଂସାରରେ ପହିଲୁ ପାଦ ପକାଇଲା ବେଳରୁ ପଚାରୁଛି, ଜାଣିବାକୁ ଚାହୁଁଛି । ଗଛରୁ ପତ୍ର ଝଡ଼େ କାହିଁକି ଓ ପୁଣି କଅଁଳ ପତ୍ର ହୁଏ କାହିଁକି ? ଶୋଇଲେ ସେ



ଅଚେତ ହୁଏ କାହିଁକି ? ମନୁଷ୍ୟ ନ ମଲେ କଅଣ ହୁଅନ୍ତା ? ଥରେ ଖାଇଦେଲେ କଅଣ ଚଳନ୍ତା ନାହିଁ ? ଛୋଟିଅ ଛୁଆ ଆଖି ଡରକି ଚାହୁଁଛି । ଫଣା ଟେକି ଖେଳୁଥିବା ସାପ ଆଡ଼କୁ ମୁଣ୍ଡ

ଠେକ ପେଟେଇ ଚାଲିଛି । ସବୁକଥା ହାତରେ ଧରି ପାଟିରେ ପୂରାଉଛି । ଦେଖିବ ଏ କଅଣ ? ବୁଝିବ ଏହା କପରି ? ଜାଣିବ, ଏହା କାହାର ? ଖୁଡରର୍ କରି ଶବ୍ଦ ହେଲେ ଆମେ ଧାଇଁ ଯାଉଁ ଏବଂ ଦେଖୁଁ ଓଳିଆ ବଳେଇ ଜଳାକବାଟବାଟେ ମୁଣ୍ଡ ଠେକ ମାଛ ଖାଉଛି । ବାଡ଼ି ଧରି ଗୋଡ଼ାଇ ଯାଇ ପଚାରୁଁ ବଳେଇ କାହିଁକି ମାଛ ଖାଏ ? ମାଛରଙ୍କା ପରି ବଳେଇ ମାଛ ନ ଧରେ କାହିଁକି ? ଓଧ କପରି ମାଛ ଧରେ ? ଧାନ ଓଳିଆରେ ବଳେଇ ଶୋଇ-ଥିବାର ଦେଖି ମୂଷା ବିଲ ଭିତରକୁ ପଳାଇଯାଏ । ବଳେଇ କାନ ପାରି ଶୁଣେ । ଆମେ ଦେଖି ଅବାକ୍ ହେଉଁ । ବଳେଇ ମୂଷା ନ ମାଇଲେ କଣ ହୁଅନ୍ତା ? ଟିକ ବାଛୁରୀର ଫୁଲୁନ୍ତୁ ଚାଲି, କୁଳି ବେଙ୍ଗର ଡିଆଁ, ଅସରପାର ଲଣ୍ଡି, ମହୁମାଛିର ଗୁଣଗୁଣ ଶବ୍ଦ, ଚେମ୍ପେଇନୋଳୀର ଚଟ୍ଚଟ୍ ଚାଲି, ବହୁରୂପିର ମୁଣ୍ଡଟୁଙ୍ଗାରିବା, ଘରଚଟିଆର ଫୁର୍‌ଉଡ଼ା, ବାୟାବସା, ଝିଂଟିପିଟିର ଶବ୍ଦ, ଉଇ-ହୁଙ୍କାର ଉଇବସା, ନାଉଆ ଗାଈର ନାଡମରା, ଘୁଷୁରିଛୁଆଙ୍କ ଦୁଧପିଆ, ମେଘୁଆ ଆକାଶରେ ଜହ୍ନମାମୁଁର ଲୁଚକାଳି ଖେଳ— ଏସବୁ ଆମ ଭୋକିଲା ମନର ଖାଦ୍ୟ ।

ଝରିଲା କୂଅର ଅସରନ୍ତି ଝରପରି ଭୋକିଲା ମନର ଝର ମରେନାହିଁ । ଖାଇଲା ପୁଅଝିଅ ରଙ୍କ । ମନ ବି ରଙ୍କ ହୁଏ । ପ୍ରଶ୍ନ ପଚାରେ । ଉତ୍ତର ମିଳେ । ପୁଣି ପ୍ରଶ୍ନ, ସେଥିର ଉତ୍ତର । ତା ଉପରେ ପ୍ରଶ୍ନ । ଏହିପରି ଲାଙ୍ଗୁଳ ଧରାଧରି ହୋଇ ଚାଲିଥାଏ । ତୁମେ କଅଣ ଖାଇଛ ? ଭାତ । କି ଭାତ ? ପଖାଳଭାତ । କପରି ହେଲା ? କଏ କଲେ ? କେବେ କଲେ ? କାହିଁକି କଲେ ? ଇତ୍ୟାଦି । ଗୋଟିଏ ପ୍ରଶ୍ନ ଉପୁଜି ସେଥିରେ ଉତ୍ତର ମିଳିଲେ ତାପରେ ଶହ ଶହ ପ୍ରଶ୍ନ ବାହାରିବ । ମନ ଖୋଲା ରହିବ ।



ଶିକାରେ ମା' କଣ ଝୁଲାଇ ଥାନ୍ତି ? ପିଲାଙ୍କ ହାତ ପାଏନାହିଁ । ମା ନଥିବା ବେଳେ ପାଛିଆ ଓଲଟେଇ ପକାଇ ତା ଉପରେ ଚଢ଼ି ପିଲାଏ ଚୁପ୍ କରି ଅନାଇ ଦିଅନ୍ତି । ନଈ ଆର ପାଖରେ, ପାହାଡ଼ ଉହାଡ଼ରେ ଓ ବଣ ଭିତରେ କଣ ଥାଏ ? ଅଜଣାରେ ଡାକ ଆମ ଅନ୍ତରରେ ଶୁଭୁଛି । ଆମେ ପଚାରୁଛୁଁ, ସେ କିଏ, କଅଣ, କାହିଁକି, କିପରି ଓ କେଉଁଠାରେ ? ଆମେ ଅଜଣା ଭିତରକୁ ପଶିଲାବେଳକୁ ଆମ ମନରୁ ଲାଜ ବାହୁଛି । ଆମ ମନ ଭୋକିଲା ହେଉଛି ।

ଆତ କାହିଁକି ତଳକୁ ଖସୁଛି । ଏକଥା ନିଉଟନ୍‌ଙ୍କୁ ଭୋକିଲା କରିଥିଲା । ରାଜମୁକୁଟ କଅଣ ଖାଣ୍ଟି ସୁନାରେ ତିଆରି ? ଏହି ପ୍ରଶ୍ନ ଯୋଗୁଁ ଆର୍କିମେଡ଼ିସଙ୍କ ଲୋକ ଏତେ ବେଶି ହେଲା ଯେ, ସେ ଲଙ୍ଗଳା ହୋଇ ଗାଧୁଆଘର ଭିତରୁ ଧାଇଁ ଆସିଲେ । ମନୁଷ୍ୟ କଣ ପକ୍ଷୀପରି ଉଡ଼ିପାରେ ? ଏହି ପ୍ରଶ୍ନ ଆଜି ଉଡ଼ାଜାହାଜ ତିଆରି କରିଛି । ଭୋକିଲା ମନ ବିଜ୍ଞାନର ବିସ୍ମୟ ସୃଷ୍ଟି କରିଛି ।

ସମସ୍ତଙ୍କ ମନ ଭୋକିଲା । ସବୁ ଦେଶରେ ଏ ଭୋକ ଅଛି । କାହାକୁ ହେଲେ ଏ ଭୋକ ଛାଡ଼ିନାହିଁ । ଭୋକବେଳେ ପେଟରେ ଓଦା କନା ଦେଲେ ଝିରି ଶୁଖିଯାଏ । ଜାଣିବାର ଇଚ୍ଛା କମିଯାଏ । ଲାଙ୍ଗୁଳର ଲାଜ, ଘଡ଼ିର ଟକ୍‌ଟକ୍, ମୟୂରର ପୁଛଟେକା ନାଚ, ମନୁଷ୍ୟର ଘରକରଣା, ମହୁମାଛିର ମହୁଫେଣା, ସଫରୀର ଫର୍ ଫର୍, ଧାନ କିଆରୀର ଫୁଲହାଟ, କୋକିଶିଆଳର କଙ୍କଡ଼ାଧରା

ଏସବୁ ଆମ ଶୁଖିଲା ମନକୁ ହଲାଏ ନାହିଁ । ଆମେ ନିସ୍ତେଜ ହେଉଁ । କିନ୍ତୁ ବୋକିଲା ମନର ଝର ସବୁବେଳେ ଓଦା । କେଉଁ ଦୂର କିଆରୀରୁ ପାଣି ଘଳିଆ ଫିଟି ଚାଲିଆସୁଛି ।

ବୋକ ବେଳରେ ଆମେ ତୁଚ୍ଛା ଅଲଣା ବାରୁନାହିଁ । ଯାହା ପାଉଁ, ଖାଇଯାଉଁ । ଭାତ ସୁଆଦ ନୁହେଁ । ବୋକ ସୁଆଦ । ବୋକିଲା ମନ ବଣ ବୁଦା ମାନେନାହିଁ । ସହଜ କଠିନ ବାରେ ନାହିଁ । ଜଣା ଅଜଣା ବୁଝେନାହିଁ । ମନର ଏ ପିପାସା ନିବାରି ହୁଏନାହିଁ । ପ୍ରଶ୍ନର ଉତ୍ତର ସୁଆଦିଆ ଲାଗେ । ଥରେ ଏ ସୁଆଦ ଚାଖିଲେ ଏଥିରେ ମନ ମଜ୍ଜି ଯାଏ ।

—ପାଞ୍ଚ—

## ଖୋଲା ମନ ଖାଲି ନୁହେଁ

ମେଲା ଜାଗାରେ ଖୋଲା ଘର କରିବା ଦରକାର । ଏହାଦ୍ୱାରା ସ୍ୱାସ୍ଥ୍ୟ ଭଲ ରହିବ । ପବନ ଅବାଧରେ ଯା ଆସ କରିବ । ଆଲୁଅ ଘର ଭିତରକୁ ପଶିବ । କେଉଁଠାରେ କଅଣ ଅଛି, ସହଜରେ ଜଣା ପଡ଼ିବ । ସେଗୁଡ଼ିକର ଉଚିତ ବ୍ୟବହାର ମଧ୍ଯ କରିହେବ । ସାପ, ମାଛି, ମଶା ଓ ମୂଷା ସେ ଘରେ ରହିପାରିବେ ନାହିଁ । ସେ ଘରକୁ ରୋଗ ଯିବନାହିଁ । ତେଣୁ ସେ ଘରେ ରହୁଥିବା ଲୋକମାନଙ୍କର ଦେହ ଭଲ ରହିବ । ସେମାନେ ଆନନ୍ଦରେ କାଳ କାଟିବେ ଓ ସୁଖରେ ବଢ଼ିବେ ।

ଆମ ମନକୁ ସେହିପରି ଖୋଲା ରଖିବା ଦରକାର । ମନର ଦ୍ୱାର ଓ ଝରକା ଖୋଲିଦେବା ଉଚିତ । କିଏ, କଅଣ, କିପରି ଓ

କାହାଁକି କହୁଛି ? ଏକଥା ଶୁଣିବା ଓ ବିଚାରିବା ଉଚିତ । ବଳଦଆ ରୀତିରେ ନବୁଝି କାମ କରିବା ଅନୁଚିତ । ଏହା ଅନ୍ଧ ବୁଝାମଣା । ଏ କାମରେ ମନଖୋଲା ନୁହେଁ । ଯିଏ ଖାଲ ଢ଼ିପ ନମାନି ଧାଇଁ-ଯାଏ ତାର ଗୋଡ଼ ଛୋଟା ହୁଏ । ସେ ଖାଲ ଖଣ୍ଡିଆ ଖାବରା ହୁଏ । ସେଥିରେ ପ୍ରାଣ ଯାଇପାରେ ବା ସେ ପାରଉତାର ହୋଇ ଯାଇପାରେ । ତହିଁରେ ମରିବା ଓ ତରିବା ଉଭୟ ଅଛି । ବରଂ ମରିବା ବେଶୀ ଓ ତରିବା ଆଶା ଖୁବ୍ କମ୍ । ବୁଝି ବିଚାରି କାମ କଲେ, ଫଳ ଭଲ । "ବଡ଼ ଥିଲେ ବିଚାରି, ସାନ ଥିଲେ ପଚାରି" ଏହା ନିୟମ । ଖୋଲା ମନରେ ବିଚାରିବା ଓ ପଚାରିବା ସମ୍ଭବ । ଆକାଶରେ ଶବ୍ଦର ଢେଉ ଚାଲିଥିଲା ପରି ମନରେ ବିଚାର ସବୁ-ବେଳେ ଚାଲିଛି । ମନକୁ ଖୋଲା ରଖିଲେ ସେ ସବୁ ଆମ ବିଚାରକୁ ଆସିବ । ଆମ ମନ ଭଲ ବିଚାର କରି ପାରିବ । ଅନ୍ୟ ବିଚାରର ଆଲୋକ ଆମ ମନରେ ପଡ଼ିଲେ, ପବନ ଲାଗିଲେ, ଆମ ବିଚାର ଉଜ୍ଜ୍ୱଳ ହେବ । ଆମ ବିଚାର ଠିକ୍ ବାଟରେ ଆଗେଇ ଚାଲିବ ।

ମାଟି ଢେଲାଟେ ଭୂସ୍ କରି ପକାଇ ଦେଲା ପରି ଆମେ ଝଟ୍ କରି କିଛି କାମ କରି ଦେବାନାହିଁ । ନାଚିଲା ଲୋକ ତାଳମାନ ସଙ୍ଗରେ ପାଦ ମିଳାଇ ଧୀରେ ଧୀରେ ନାଚ ଆରମ୍ଭ କରେ । ହଠାତ୍ ବି ନାଚ ଶେଷ କରେନାହିଁ । ମନ ଖୋଲା ରଖିଲେ ଆମେ ସବୁଆଡ଼ ବିଚାରି ସେହିପରି ଧୀରେ ଧୀରେ କାମ କରିବା । ଆମେ ଚମକିବା ନାହିଁ ଓ ଅନ୍ୟ କାହାରିକୁ ଚମକାଇବା ନାହିଁ । ଆମେ ଚାରି-ଆଡ଼କୁ ଅନାଇବା । ଚାରିଆଡ଼ର ବିଚାର ଆମ ଖୋଲାମନ ଭିତରେ ପଶିବ । ଆମେ ଅପେକ୍ଷା କରିବା ।

ଖୋଲାମନ ଖାଲି ମନ ନୁହେଁ । ଖୋଲାଘରର ଅର୍ଥ ଖାଲି ଘର ନୁହେଁ । ଖୋଲା ଘର ଲୋକ ଖାଲି ହୋଇଗଲେ ସେଥିରେ

ସାପ ରହିବେ । ଭଇ ହୁଙ୍କା କରିବ । ଲୋକ ଥିବା ଘରକୁ ଖୋଲା କଲେ ଉପକାର ହେବ । ସେପରି ଖୋଲା ମନକୁ ଖାଲି କରି-ଦେଲେ ସେଥିରେ ପାପ ରାକ୍ଷସ ରହିବ । ପରର ଅନିଷ୍ଟ ଚିନ୍ତା ଓ ପାପ ବସା କରିବ । ଯେତେବେଳେ ଯେଉଁ ଧାରଣା ଯେଉଁ ଆଡ଼ୁ ଆସିବ, ତାହା ମନରେ ସ୍ଥାନ ପାଇବ । ଯେ ଯେଉଁ କଥା କହିବ, ସେ ତାହାର ଚାକର ହୋଇ ରହିବ । କାରଣ ତାର କୌଣସି ନିର୍ଦ୍ଦିଷ୍ଟ ଧାରଣା ନାହିଁ ।

ତେଣୁ ଖୋଲାମନକୁ ଖାଲି ରଖିବା ଉଚିତ ନୁହେଁ । ଆମ ମନକୁ ଖୋଲା ରଖିବାକୁ ହେବ । କିନ୍ତୁ ଖାଲି କରିବା ଅନୁଚିତ । ଆମର ନିଜର ଧାରଣା ଥିବା ଉଚିତ । ମନରେ ନିର୍ଦ୍ଦିଷ୍ଟ ଭାବନା ଥିବା ଦରକାର । କିନ୍ତୁ ମନ ଖୋଲା ଥିଲେ, ଏହି ଭାବନାକୁ ଆମେ ଅନ୍ଧ ପରି ଲଗାଇ ପାରିବା ନାହିଁ; ବରଂ ଖୋଲାମନରେ ଏହି ଭାବନାର ଅଦଳବଦଳ ହେବ । ଅନ୍ୟ ବିଚାରର ଆଲୋକ ଆମ ମନରେ ପଡ଼ିଲେ ଆମ ବିଚାର, ବୁଦ୍ଧି ଓ ବିବେକ ସ୍ପଷ୍ଟ ହେବ । ମନରୁ ମଳିନତା ହଟିଯିବ । ତେବେ ଯାଇଁ ଆମେ ଦେଶ ବିଦେଶର ମଙ୍ଗଳ କରିପାରିବା ।

---

ମୁଦ୍ରକ—ନବରତ୍ନ ପ୍ରିଣ୍ଟର୍ସ, ଝାଞ୍ଜିରିମଙ୍ଗଳା, କଟକ-୯